# ଯାଜପୁରର ଦୁଇ ଅମ୍ଳାନ ପ୍ରତିଭା

## ବିଚିତ୍ରା ନନ୍ଦ

ଓ

## ବ୍ରଜ ସୁନ୍ଦର



ସୃଷ୍ଟୌ ସୃଷ୍ଟିଂ ସ୍ୱରୂପାଂ ତ୍ରିପୂର ବିଜୟିନୀଂ ସର୍ବରୂପାଁ ଗୁଣାଢ୍ୟାଂ,
ଶୁଦ୍ଧାଂ ନିତ୍ୟାଂଚ ସତ୍ୟାଂ ରିପୁକୂଳଭୟଦାଂ ଶୂଳଲାଙ୍ଗୁଳ ହସ୍ତାମ୍ ।
ଭକ୍ତାନାଂ ଭକ୍ତି ରୂପା ମମର ପରିବୃତାଂ ସିଦ୍ଧେଶ୍ୱରୀଂ ଜ୍ଞାନଦାଂ,
ବନ୍ଦେତାଂ ପରମେଶ୍ୱରୀଂ ବିରଜସଂ ମୋକ୍ଷାର୍ଥ ସିଦ୍ଧି ପ୍ରଦାମ୍ ।।

# ଯାଜପୁରର ଦୁଇ ଅମ୍ଳାନ ପ୍ରତିଭା

# ବିଚିତ୍ରା ନନ୍ଦ

# ଓ

# ବ୍ରଜ ସୁନ୍ଦର

ଉତ୍କଳ ଦିବସ ପାଳନ ପ୍ରସ୍ତୁତି କମିଟି

ଯାଜପୁର

ପ୍ରକାଶକ
ସ୍ୱତନ୍ତ୍ର ଉତ୍କଳ ଦିବସ ପାଳନ ପ୍ରସ୍ତୁତି କମିଟି
ଯାଜପୁର

ପ୍ରକାଶନ
ଅପ୍ରେଲ ପହିଲା, ୧୯୯୭

ମୁଦ୍ରଣ
ରୟାଲ ହାଫଟୋନ୍ କୋ:,
ନିମଚୌଡ଼ି, କଟକ

ମୂଲ୍ୟ : ଦଶଟଙ୍କା

# ଅବତରଣିକା

ଗତ ତା ୨୧-୩-୯୭ ରିଖରେ ଯାଜପୁର ଜିଲ୍ଲାପାଳ ଶ୍ରୀଯୁକ୍ତ ସୁରେଶ ଚନ୍ଦ୍ର ମନ୍ତ୍ରୀଙ୍କ ଆହ୍ବାନ କ୍ରମେ ଆଗାମୀ ସ୍ୱତନ୍ତ୍ର ଉତ୍କଳ ପ୍ରତିଷ୍ଠା ଦିବସ ପାଳନ ସମ୍ବନ୍ଧରେ ଆଲୋଚନା କରିବା ପାଇଁ ଯାଜପୁରର ବିଶିଷ୍ଟ ନାଗରୀକ ମାନଙ୍କର ଏକ ଆଲୋଚନା ସଭା ଜିଲ୍ଲାପାଳଙ୍କ ଅଫିସ୍ ଗୃହରେ ଅନୁଷ୍ଠିତ ହୋଇଥିଲା ଏବଂ ସଭାରେ ଶ୍ରୀଯୁକ୍ତ ଜିଲ୍ଲାପାଳ ମହୋଦୟ ସ୍ୱତନ୍ତ୍ର ଉତ୍କଳ ପ୍ରତିଷ୍ଠା ଆନ୍ଦୋଳନରେ ଯାଜପୁରର ଯେଉଁ ବରପୁତ୍ରମାନେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ ସେମାନଙ୍କ ଜୀବନୀ ସମ୍ବଳିତ ଏକ ପୁସ୍ତିକା ପ୍ରକାଶ କରି ଜନସାଧାରଣଙ୍କ ମଧ୍ୟରେ ବଣ୍ଟନ କରିବାର ଏକି ପ୍ରଂଶସନୀୟ ପ୍ରସ୍ତବ ଆଗତ କରିଥିଲେ । ସଭାରେ ଉପସ୍ଥିତ ଥିବା ସମସ୍ତ ସଦସ୍ୟ ଏହି ପ୍ରସ୍ତାବକୁ ଗ୍ରହଣ କରି ପୁସ୍ତିକା ପ୍ରକାଶନ ପାଇଁ ପାଣ୍ଡୁଲିପି ପ୍ରସ୍ତୁତ କରିବା ଉଦ୍ଦେଶ୍ୟରେ ଏକ ଶିଷ୍ଟ ମଣ୍ଡଳୀ ଗଠନ କରାଯାଇଥିଲା, ବହୁକଷ୍ଟ ସ୍ୱୀକାର କରି ଏହି ଶିଷ୍ଟ ମଣ୍ଡଳୀ ପାଣ୍ଡୁଲିପି ପ୍ରସ୍ତୁତ କରି ଶ୍ରୀଯୁକ୍ତ ଜିଲ୍ଲାପାଳଙ୍କୁ ତା ୨୬-୩-୯୭ ରିଖରେ ଅର୍ପଣ କରିଥିଲେ । ଏହି ପାଣ୍ଡୁଲିପିକୁ ଭିତ୍ତିକରି ଯାଜପୁରର ଦୁଇ ବରପୁତ୍ର ଆଦି ନେତା ଶ୍ରୀ ବିଚିତ୍ରାନନ୍ଦ ଦାସ ଓ ଦେଶପ୍ରାଣ ଶ୍ରୀ ବ୍ରଜସୁନ୍ଦର ଦାସଙ୍କ ଜୀବନୀ ସଂକ୍ଷେପରେ ଏହି ପୁସ୍ତକଟିରେ ପ୍ରକାଶିତ ହେଲା । ଯାଜପୁର ତଥା ଓଡ଼ିଶାର ଜନସାଧାରଣ ଏହି ମହାନ୍ ଜନନାୟକଙ୍କୁ ସ୍ମରଣ କରିବାର ସୁଯୋଗ ପାଇଲେ ଆଜି ସ୍ୱତନ୍ତ୍ର ଉତ୍କଳ ଦିବସ ପ୍ରତିଷ୍ଠା ଦିବସର ଏହି ଷଷ୍ଠିତମ ବର୍ଷ ପୂର୍ତ୍ତି ପାଳନ ଅବସରରେ ।

ସ୍ୱତନ୍ତ୍ର ଉତ୍କଳ ପ୍ରତିଷ୍ଠା ତଥା ଓଡ଼ିଆ ଭାଷାର ପ୍ରସାର ନିମିତ୍ତ ଯେଉଁ ଆନ୍ଦୋଳନ ହୋଇଥିଲା ସେ ବିଷୟ ସ୍ମରଣ କଲେ , ଉତ୍କଳ ଗୌରବ ମଧୁସୂଦନ ଦାସ ଓ ପାରଳା ମହାରାଜା ଗଜପତି କୃଷ୍ଣଚନ୍ଦ୍ର ଦେଓଙ୍କ ଭଳି କେତେକଙ୍କ ଅବଦାନ ସ୍ୱତଃ ସ୍ମୃତିକୁ ଆସେ, କିନ୍ତୁ ପ୍ରଚାର ଓ ଉପଯୁକ୍ତ ଜ୍ଞାନ ଅଭାବରୁ ସେମାନଙ୍କର ବହୁ ପୂର୍ବରୁ ଏ ଉଦ୍ଦେଶ୍ୟରେ ଆନ୍ଦୋଳନ କରି ନିସ୍ୱ ଓ ସର୍ବସ୍ୱାନ୍ତ ହୋଇଥିବା ଯାଜପୁରର ଜଣେ ବରପୁତ୍ର ବିଚିତ୍ରାନନ୍ଦ ଦାସଙ୍କୁ କେହି ସ୍ମରଣକୁ ଆଣନ୍ତି ନାହିଁ କି ଆଣି ନାହାନ୍ତି । ଓଡ଼ିଆ ଭାଷାର ସୁରକ୍ଷା ଓ ସ୍ୱତନ୍ତ୍ର ଉତ୍କଳ ଗଠନର ତତ୍କାଳୀନ ଆନ୍ଦୋଳନରେ ସକ୍ରୀୟ ଅଂଶ ଗ୍ରହଣ କରି ବିସ୍ମୃତି ଗର୍ଭକୁ ଚାଲିଯାଇଥିବା ଯାଜପୁରର ଆଉ ଜଣେ ବରପୁତ୍ର ହେଲେ ଶ୍ରୀ ବଜ୍ରସୁନ୍ଦର ଦାସ ବିସ୍ମୃତି ର ଅସୀମ ଗର୍ଭରେ ଲୀନ ହୋଇଯିବା ପୂର୍ବରୁ ପୁଣି ଜଳି ଉଠିଛି ତାଙ୍କର ତ୍ୟାଗପୂତ ଜୀବନର ଅଲିଭା ପ୍ରଦୀପ ।

"One can not be great but
One can admire greatness".

ଆସନ୍ତୁ ସେହି ପ୍ରଦୀପ ପାଖରେ ଜଣାଇବା ଆମର ଅସରନ୍ତି ଶ୍ରଦ୍ଧାଞ୍ଜଳୀ ଆଜିର ଏହି ସ୍ୱତନ୍ତ୍ର ଉତ୍କଳ ପ୍ରତିଷ୍ଠା ଦିବସର ଷଷ୍ଠିତମ ବର୍ଷ ପୂର୍ତ୍ତି ପାଳନ ଅବସରରେ ତାଙ୍କରି ଜନ୍ମଭୂମି ଏହି ଯାଜପୁର ମାଟିରେ ।ଇତି ।

ଶିଷ୍ଟ ମଣ୍ଡଳୀ
ସ୍ୱତନ୍ତ୍ର ଉତ୍କଳ ଦିବସ ପାଳନ
ପ୍ରସ୍ତୁତି କମିଟି - ଯାଜପୁର

# ଆଦିନେତା
# ବିଚିତ୍ରାନନ୍ଦ ଦାସ

ଯାଜପୁର ଜିଲ୍ଲାର ଚୌହଦି ମଧ୍ୟରେ ବିଚିତ୍ରାନନ୍ଦଙ୍କର ଜନ୍ମ । ଦୀର୍ଘ ୩୦ ବର୍ଷଧରି ଏକ ସମୟ ଖଣ୍ଡର ଓଡ଼ିଶା ଇତିହାସକୁ (୧୮୪୪-୧୮୭୫) ସେ ପ୍ରଭାବିତ କରିଥିଲେ । ତାଙ୍କର ମୁକ୍ତ ଚିନ୍ତା, ଯୁକ୍ତି ସିଦ୍ଧ ବିଚାର ଓ ଦୃଢ଼ ସଙ୍କଳ୍ପ ସେତେବେଳର ଆତ୍ମାପ୍ରତ୍ୟୟହୀନ ମ୍ରିୟମାଣ ଓଡ଼ିଆଜାତି ଭିତରେ ଜୀବନର ସ୍ପନ୍ଦନ ଖେଳାଇ ଦେଇଥିଲା । ସେଇଥିପାଇଁ ତାଙ୍କୁ ଏ ଜାତି ଗଠନରେ ଆଦିନେତା କୁହାଯାଏ ।

ଯାଜପୁରରେ ତାଙ୍କର ସ୍ମୃତି ଚାରଣ ହୁଏ ନାହିଁ । ସାଂସ୍କୃତିକ ସମାବେଶ, ଉତ୍କଳଦିବସ ଓ ସାହିତ୍ୟ ଅନୁଷ୍ଠାନ ପାଖରେ ସେ ଯେପରି ଅଜଣା ରହି ଯାଇଛନ୍ତି । ଏବେ ତାଙ୍କର କେହି ଜଣେ ବଂଶଧର ତାଙ୍କର ଶ୍ରାଦ୍ଧ ଦିବସ ପାଳନ କରୁଛନ୍ତି । କଟକର "ବିଚିତ୍ରାନନ୍ଦ ସ୍ମୃତି ସଂସଦ" ତାଙ୍କୁ ଲୋକଲୋଚନକୁ ଆଣିବା ପାଇଁ ଦୀର୍ଘଦିନ ଧରି ଉଦ୍ୟମ କରୁନାହିଁ । ସେ ଥିଲେ । ଚେତନାର ଏକ ଉଚ୍ଚସତ୍ତା । ଅବଶ୍ୟ ଯାଜପୁର ବାସୀଙ୍କ ସ୍ୱୀକୃତି ଉପରେ ତାଙ୍କର ଅନନ୍ୟ ପ୍ରତିଭା ନିର୍ଭରଶୀଳ ନୁହେଁ । ଜନ୍ମ

ଜନ୍ମରୁ ପୋଷିତ ଓ ବିକସିତ ଅସ୍ପୃହା ଭିତରେ ଚେତନା ଦୃଷ୍ଟିରେ ସେ ଅସାଧାରଣ । ଓଡ଼ିଆ ଜାତୀୟ ଜୀବନର ସେ ଯେପରି ପ୍ରଥମ ସ୍ଫୁଲିଙ୍ଗ । ଓଡ଼ିଆ ଜାତିର ସେ ପଥଦ୍ରଷ୍ଟା । ତାଙ୍କ ମୃତ୍ୟୁରେ ବ୍ୟଥିତ ହୋଇ କର୍ମବୀର ଗୌରୀଶଙ୍କର ତାଙ୍କ ସମ୍ପାଦିତ ଉତ୍କଳ ଦୀପିକାର ଏକ ବିଶେଷ ସଂଖ୍ୟା ୧୮୭୫ ମସିହା ଅଗଷ୍ଟ ମାସରେ ପ୍ରକାଶ କରିଥିଲେ । ବିଚିତ୍ରାନନ୍ଦଙ୍କର ବହୁମୁଖୀ ପ୍ରତିଭା ତଥା କାର୍ଯ୍ୟଧାରା ଉପରେ ସେ ଏହି ସଂଖ୍ୟାରେ ଆଲୋକପାତ କରିଥିଲେ । ବାଲେଶ୍ୱରରୁ ପ୍ରକାଶିତ ତଦାନୀନ୍ତନ ''ସମ୍ବାଦ ବାହିକା'' ମଧ୍ୟ ବିଚିତ୍ରା ନନ୍ଦଙ୍କ ଉପରେ ଦିଗ୍‌ଦର୍ଶନ ଦେଇଥିଲା । ଏହି ସବୁକୁ ଆଧାର କରି ଆଦି ନେତା ବିଚିତ୍ରାନନ୍ଦଙ୍କର ସ୍ମୃତି ସଂସଦ ଯାଜପୁର ସହର ନିବାସୀ ରାଏ ସାହେବ ୰ ବାମଦେବ ମିଶ୍ରଙ୍କ ଲିଖିତ ଏକ କ୍ଷୁଦ୍ର ପୁସ୍ତିକା ପ୍ରକାଶ କରିଥିଲା । ବିଶିଷ୍ଟ ସାହିତ୍ୟିକ ସୁରେନ୍ଦ୍ର ମହାନ୍ତି ମଧ୍ୟ ତାଙ୍କ 'ଶତାବ୍ଦୀର ସୂର୍ଯ୍ୟ' ରେ ସେ କାଳର ଓଡ଼ିଶାରେ ବିଚିତ୍ରାନନ୍ଦଙ୍କର ଗୌରବାବହ ସ୍ଥାନ ବିଷୟରେ ଉଲ୍ଲେଖ କରିଛନ୍ତି । ତାଙ୍କର ଆଦର୍ଶ ଜୀବନ ଧାରା ଓ ଜାତି ପ୍ରୀତି ଯେ ସମଗ୍ର ଯାଜପୁର ବାସୀଙ୍କୁ ଅନୁପ୍ରାଣିତ କରିବ ଏହି ଆଶା ନେଇ ତାଙ୍କର ମହନୀୟ ଜୀବନୀ ସମ୍ବନ୍ଧରେ କିଛି ମାତ୍ର ଅବତାରଣା କରାଗଲା ।

# ଜୀବନଧାରା

ଯାଜପୁର ଠାରୁ ପ୍ରାୟ ୨୦ କିଲୋମିଟର ଦୂର କଣ୍ଟାବଣିଆ ଗାଁରେ ବିଚିତ୍ରାନନ୍ଦଙ୍କର ଜନ୍ମ ୧୮୬୭ ମସିହାରେ । ପିତାଙ୍କ ନାମ ଶ୍ରୀ ତ୍ରିଲୋଚନ ଦାସ ଓ ମାତାଙ୍କ ନାମ ରାଣୀ ଦାସ । ବିଚିତ୍ରାନନ୍ଦ ଥିଲେ ପିତା ମାତାଙ୍କର ଏକୋଇର ବଳା ବିଶିକେଶନ । ପିଲାଦିନୁ ସେ ଜିଦ୍‌ଖୋର ସ୍ୱଭାବର ଥିଲେ । ପରିବାରର ସମ୍ପନ୍ନତା ଥିଲା । କଟକ, ବାଲେଶ୍ୱର ଓ ପୁରୀ ପ୍ରଭୃତି ସ୍ଥାନରେ ବିଚିତ୍ରାନନ୍ଦଙ୍କର ମୁରବୀମାନେ ବିଭିନ୍ନ ସରକାରୀ କାର୍ଯ୍ୟରେ ନିଯୁକ୍ତି ପାଇଥିଲେ । ପିତା ପୁରୀ ଅଠରନଳାଠାରେ ଯାତ୍ରୀ ଟିକସ ଆଦାୟ କାର୍ଯ୍ୟରେ ନିଯୁକ୍ତ ଥିଲେ । ବାଲ୍ୟ ଶିକ୍ଷା ପାଇଁ ବିଚିତ୍ରାନନ୍ଦଙ୍କୁ ସେ ପୁରୀ ନେଇ ଯାଇଥିଲେ । ସେ ତାଙ୍କର ଉତ୍ତର ବୟସର ଏକମାତ୍ର ସନ୍ତାନ ଥିବାରୁ ତାଙ୍କୁ ପାଖରୁ ଛାଡ଼ିବାକୁ ମନ ବଳାଇ ନଥିଲେ । ତାଙ୍କ ପାଠ ପଢ଼ାପ୍ରତି ଧ୍ୟାନ ଦେଉଥିଲେ, କିନ୍ତୁ ବିଦ୍ୟାଳୟ ଶିକ୍ଷାରେ ବିଚିତ୍ରାନନ୍ଦଙ୍କର ମନ ନଥିଲା । ତେଣୁ ସେ କଟକର ତତ୍‌କାଳୀନ ଡେପୁଟି ବାବୁ ହରେକୃଷ୍ଣ ଦାସଙ୍କ ତତ୍ତ୍ୱାବଧାନରେ ଇଂରାଜି ପଢ଼ିବା ପାଇଁ ତାଙ୍କୁ କଟକ ପଠାଇ ଦେଲେ । ବିଚିତ୍ରାନନ୍ଦ ଥିଲେ ବଡ଼ ଚଞ୍ଚଳ ସ୍ୱଭାବର । ଦିନେ ହଠାତ୍ ସେ କଟକରୁ ବାଲେଶ୍ୱର ଚାଲିଗଲେ ତାଙ୍କ ତତ୍ତ୍ୱାବଧାରକଙ୍କ ଅଜାଣତରେ । ବ୍ୟାସ କବି

ଫକୀର ମୋହନ ତାଙ୍କ ଆତ୍ମଜୀବନୀରେ ବିଚିତ୍ରାନନ୍ଦ ବାବୁ ତାଙ୍କ ଶ୍ୱଶୁର ଶିବ ପ୍ରସାଦ ଚୌଧୁରୀଙ୍କ ସହ ବାଲେଶ୍ୱର ଇଂରାଜି ବିଦ୍ୟାଳୟରେ ଅଳ୍ପକାଳ ପଢୁଥବା ବିଷୟରେ ଉଲ୍ଲେଖ କରିଛନ୍ତି । କିନ୍ତୁ ବିଦ୍ୟାଳୟର ଚାରି କାନ୍ଥ ତାଙ୍କୁ ବାନ୍ଧି ରଖିପାରିଲା ନାହିଁ । ସେ ବାଲେଶ୍ୱର ନିମ୍‌କୀ ମାହଲ ବା ଲୁଣମରା ବିଭାଗରେ ଠିକାଦାରୀ ଆରମ୍ଭ କରିଦେଲେ । କର୍ମମୟ ଜୀବନ ଆରମ୍ଭ ହୋଇଗଲା ମାତ୍ର ୧୪ ବର୍ଷ ବୟସରୁ । ବଙ୍ଗଳା ଓ ବିହାରୀ ଠିକାଦାରମାନେ ସ୍ୱଭାବିକ ଭାବେ ଅନୁଦାର ଥିଲେ ମଧ୍ୟ ବିସ୍ମିତ ହେଉଥିଲେ । ଠିକାଦାରୀରୁ ମନମୁତାବକ ରୋଜଗାର ହେଲା । ତାଙ୍କର ଚଞ୍ଚଳମନ ନିଶାପାଣି ପ୍ରତି ଆକୃଷ୍ଟ ହେଲା । ସାଙ୍ଗମାନଙ୍କ ସହ ମିଶି ବେଳେ ବେଳେ ନିଶାପାନରେ ପ୍ରବୃତ୍ତ ହେଲେ । ଏ କାର୍ଯ୍ୟରେ ଅର୍ଥର ମଧ୍ୟ ଅଭାବ ରହିଲା ନାହିଁ । ସାଥୀ ବି ମିଳିଲେ ବହୁତ । ବିଳାସ ବ୍ୟସନ ମଧ୍ୟରେ ଜୀବନଟାକୁ ବିତାଇ ଦେବାପାଇଁ ସୁଯୋଗର ଅଭାବ ନଥିଲା । କିନ୍ତୁ ସବୁ ଉତ୍ତେଜନା ସତ୍ତ୍ୱେ ବିଚିତ୍ରାନନ୍ଦ ମାତ୍ର ତିନିବର୍ଷ ପରେ ନିମ୍‌କୀ ମାହାଲ କାମ ପ୍ରତି ବିମୁଖ ହୋଇପଡ଼ିଲେ ।

ତାଙ୍କ ଭିତରେ ସ୍ୱପ୍ନଥିଲା ବହୁତ । ଇଚ୍ଛାଶକ୍ତି ମଧ୍ୟ କମ ନଥିଲା । ଜୀବନଟାକୁ ସମୁଦ୍ର କୂଳରେ ନିମ୍‌କୀ ମହାଲଠାରେ

ଆବଦ୍ଧ କରି ରଖିବାକୁ ତାଙ୍କର ମନ ବଳିଲା ନାହିଁ । ଜୀବନର ଗତି ବଦଳିଗଲା । ସେ କଟକ ଫୌଜଦାରୀ ଅଦାଲତରେ ମୋହରୀର ଚାକିରୀରେ ବାହେଲ ହୋଇଗଲେ । ସେତେବେଳକୁ ତାଙ୍କର ବୟସ ମାତ୍ର ସତର । ସେ ଦୀର୍ଘ ଷୋଳ ବର୍ଷ ଧରି ଏହି କାର୍ଯ୍ୟରେ ରହିଥିଲେ । ତାଙ୍କର ବିଚକ୍ଷଣତା, ନିଷ୍ଠା ଓ କାର୍ଯ୍ୟଦକ୍ଷତା ଥିଲା ଅସାମାନ୍ୟ । ତେଣୁ ହାକିମମାନଙ୍କର ତାଙ୍କ ଉପରେ ଅଗାଧ ବିଶ୍ୱାସ ଥିଲା । ପ୍ରଶାସନିକ ନୀତି ନିୟମ ଆଇନ କାନୁନ ବିଷୟରେ ତାଙ୍କଠାରୁ ପରାମର୍ଶ ନେବା ପାଇଁ ବହୁ ବ୍ୟକ୍ତି ତାଙ୍କର ଦ୍ୱାରସ୍ଥ ହେଉଥିଲେ । ତରୁଣ ବୟସରେ ତାଙ୍କର ପ୍ରଚୁର ଶାସନଗତ ଅଭିଜ୍ଞତା ସମସ୍ତଙ୍କୁ ବିସ୍ମିତ କରୁଥିଲା ।

ତାଙ୍କର ତୀକ୍ଷ୍ଣ ବୁଦ୍ଧି, ଦୃଢ଼ ନିଷ୍ପତି କର୍ମ ପ୍ରତି ଶ୍ରଦ୍ଧା ଓ ପ୍ରତିବଦ୍ଧତାକୁ ବିଚାରକୁ ନେଇ ତତ୍କାଳୀନ କମିଶନର ତାଙ୍କୁ ସିରସ୍ତାଦାର ପଦରେ ନିଯୁକ୍ତ କରିଦେଲେ । ସେ ସମୟ ଥିଲା ଭିନ୍ନ । ଛୋଟ ବଡ଼ ଚାକିରୀଟିଏ ପାଇବା ପରେ ଇଂରେଜ ହାକିମଙ୍କର ଲୋଭନୀୟ ସାନ୍ନିଧ୍ୟ ଲାଭ ପାଇଁ ପ୍ରତିଯୋଗିତା ଥିଲା ତୀବ୍ର । ସରକାରୀ ଚାକିରୀ ଓ ହାକିମମାନଙ୍କର ଅନୁଗ୍ରହ ପାଇବା ପରେ କର୍ମଚାରୀଙ୍କ ମତିଗତିରେ ପରିବର୍ତ୍ତନ ଘଟୁଥିଲା । ସେମାନେ ସ୍ୱତନ୍ତ୍ର ବାବୁ ଶ୍ରେଣୀର ହୋଇ

ଯାଉଥିଲେ । ମାତୃଭୂମି ତଥା ଅଯୁତ ଅଯୁତ ଓଡ଼ିଆଙ୍କ ପ୍ରତି କିଛି କର୍ତ୍ତବ୍ୟ ଅଛି ଏହା ପାଶୋରୀ ଦେଉଥିଲେ । କିନ୍ତୁ ବିଚିତ୍ରାନନ୍ଦ ଥିଲେ ଭିନ୍ନ ରୁଚିର । ସେ ସିରସ୍ତାଦାରୀକୁ ଆଦରି ନେଇ ତାଙ୍କର ଚୁମ୍ବକୀୟ ବ୍ୟକ୍ତିତ୍ୱ, ସଦ୍‌ଗୁଣ ଓ ହାକିମମାନଙ୍କର ତାଙ୍କ ପ୍ରତି ଗଭୀର ବିଶ୍ୱାସକୁ ଦୁସ୍ଥ ଜନସେବା, ଓଡ଼ିଆ ଜାତିର ପୁନର୍ଜାଗରଣ ଓ ଶିକ୍ଷା ବିସ୍ତାର ଆଦି କାର୍ଯ୍ୟରେ ଉପଯୋଗ କଲେ । ତାଙ୍କର ପ୍ରଭାବଶାଳୀ ବ୍ୟକ୍ତିତ୍ୱ ତ୍ରେଭର ସାହେବ ଓ ରେଭେନ୍‌ସା ସାହେବଙ୍କ ଭଳି ଓଡ଼ିଶାର କମିଶନରଙ୍କୁ ମଧ ଓଡ଼ିଆ ଭାଷା ଶିକ୍ଷା ଓ ପ୍ରସାର ନ'ଅଙ୍କ ଦୁର୍ଭିକ୍ଷରେ ଅନାଥ ଓ ବୁଭୁକ୍ଷୁମାନଙ୍କ ପ୍ରତି ସହାନୁଭୂତିଶୀଳ କରିବାରେ ପ୍ରଭାବିତ କରିଥିଲା ।

ବହୁ ନେତୃମଣ୍ଡଳୀ ପ୍ରଚଳିତ ବିଦେଶୀ ଶାସନକୁ ବିରୋଧ କରି ଦେଶର ଜନସାଧାରଣଙ୍କ ମାନ୍ୟତା ଲଭିଛନ୍ତି । କିନ୍ତୁ ବିଚିତ୍ରାନନ୍ଦଙ୍କ ସଂଗ୍ରାମ ଥିଲା ଏକାବେଳେକେ ଭିନ୍ନ ଓ ସ୍ୱତନ୍ତ୍ର । ଶାସନ ବ୍ୟବସ୍ଥା ସହ ଏକିଭୂତ ହୋଇ ଚାଲିଥିଲା ତାଙ୍କର ସାଧନା । ବିଚିତ୍ରାନନ୍ଦଙ୍କର ଜୀବନର ତିନୋଟି ଆଭିମୁଖ୍ୟ ସ୍ପଷ୍ଟ—ଜନସେବା, ସମାଜ ସଂସ୍କାର ଓ ଓଡ଼ିଆର ପୁନର୍ଜାଗରଣ ।

# ନ'ଅଙ୍କ ଦୁର୍ଭିକ୍ଷ

୧୮୬୬ ଖ୍ରୀ.ଅ.ରେ ନ'ଅଙ୍କ ଦୁର୍ଭିକ୍ଷ ଓଡ଼ିଆମାନଙ୍କର ମେରୁଦଣ୍ଡ ଭାଙ୍ଗି ଦେଇଥିଲା । ସରକାରୀ ଉଦାସୀନତାରୁ ଅବସ୍ଥା ଭୟାବହ ହେଲା । ଚାରିଆଡ଼େ ହା'ଅନ୍ନର ଚିତ୍କାର । ଗାଁ ଗଣ୍ଡା ଛାଡ଼ି ଲୋକେ ଅନ୍ନଛତ୍ର ନିକଟକୁ ଦୌଡ଼ୁଥିଲେ । ପେଟପାଇଁ ଜାତି ଧର୍ମ ଓ ସ୍ୱାଭିମାନକୁ ଜଳାଞ୍ଜଳି ଦେଇ ଅନ୍ନଛତ୍ରରେ ପଶିଲେ । ଚାରିଆଡ଼େ କୁଢ଼ କୁଢ଼ ଶବ ଓ ଶିଆଳ ଶାଗୁଣାଙ୍କ ମେଳ । ସାମାନ୍ୟ ପ୍ରଲୋଭନର ବଶବର୍ତ୍ତୀ ହୋଇ ଅନ୍ୟଧର୍ମକୁ ହେଲେ ଧର୍ମାନ୍ତରୀତ । ଗାଁ, ଗଣ୍ଡା, ସହର, ବଜାର ଚାରିଆଡ଼େ ମରଣର ଫୁତ୍କାର । ବିଚିତ୍ରାନନ୍ଦ ସେତେବେଳେର କମିଶନର ରେଭେନ୍‌ସା ସାହେବଙ୍କ ସିରସ୍ତାଦାର୍ । ସାହେବଙ୍କ ପ୍ରଧାନମନ୍ତ୍ରୀ ରୂପେ ପରିଚିତ । କଟକ ପ୍ରିଣ୍ଟିଂ କମ୍ପାନୀ ସେତେବେଳକୁ ଖୋଲି ସାରିଥାଏ । ବିଚିତ୍ରାନନ୍ଦ କମ୍ପାନୀର ଡାଇରେକ୍ଟର । ଦୁର୍ଭିକ୍ଷ ଦାଉରୁ ଦୁସ୍ଥମାନଙ୍କୁ ଉଦ୍ଧାର କରିବା ପାଇଁ ତାଙ୍କର ଆତ୍ମା ଛଟପଟ ହୋଇ ଉଠିଲା । ମଣିଷ ପାଇଁ ମହିମ୍ନ ସ୍ତବ ଉଚ୍ଚାରିତ ହେଲା ତାଙ୍କ ପ୍ରାଣର ଗଭୀରତମ ପ୍ରଦେଶରୁ । ଲୋକମାନଙ୍କୁ ସ୍ୱାବଲମ୍ବନଶୀଳ ହେବା ପାଇଁ ପରାମର୍ଶ ଦେଲେ । ଦୋକାନ ଖୋଲି ଶସ୍ତା ଦରରେ ଚାଉଳ ବିକ୍ରୟ କଲେ । ବଡ଼ ବଡ଼ ସଭାକରି ବଦାନ୍ୟ ବ୍ୟକ୍ତିମାନଙ୍କୁ

ଅର୍ଥ ସାହାଯ୍ୟପାଇଁ ଆବେଦନ ନିବେଦନ କଲେ । ବହୁ ଧନୀବ୍ୟକ୍ତି ଅର୍ଥ ସାହାଯ୍ୟ ପାଇଁ ଆଗେଇ ଆସିଲେ । କାରଣ ବିଚିତ୍ରାନନ୍ଦ ଥିଲେ ସେ ସମୟର ଏକ ଜାଗ୍ରତ ଚେତନା । ସେ ଜୀବନ ଠାରୁ ଜୀବିକାକୁ ବଡ଼ ମନେ କରୁନଥିଲେ । ପ୍ରଶାସନିକ ଦକ୍ଷତା ପାଇଁ ତାଙ୍କର ଅମାପ ଖ୍ୟାତି । ତାଙ୍କର ସତ୍ ପରାମର୍ଶ ଓ ଅନୁଗ୍ରହ ପାଇଁ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ଲୋକ ଆସି ତାଙ୍କ ଦୁଆରେ ଭିଡ଼ ଜମାନ୍ତି । ମୋଗଲବନ୍ଦୀ ଜମିଦାର, ଗଡ଼ଜାତର ରାଜା, କଚେରୀର ଅମଲା, କମିଶନରଙ୍କ କୃପା ପ୍ରାର୍ଥୀ ଓ ଚାକିରୀ ପ୍ରାର୍ଥୀ ଓ ବିଭିନ୍ନ ସଂଖ୍ୟକ ସମସ୍ୟାରେ ପଡ଼ିଥିବା ବ୍ୟକ୍ତି ତାଙ୍କ ପାଖକୁ ଆସନ୍ତି । ତେଣୁ ତାଙ୍କର ଆହ୍ୱାନ ବିଫଳ ହେଲାନାହିଁ । କେନ୍ଦ୍ରାପଡ଼ାର ଜମିଦାର ରାଧାଶ୍ୟାମ ନରେନ୍ଦ୍ର ଷାଠିଏ ହଜାର ମହଣ ଧାନ ଦୁର୍ଭିକ୍ଷ ପୀଡ଼ିତମାନଙ୍କ ପାଇଁ ଦାନ କରିଥିଲେ । ଧାନ ଚାଉଳ କିଣା ବିକାପାଇଁ ବିଚିତ୍ରାନନ୍ଦ ମଧ୍ୟ ଏକ ଯୌଥ କମ୍ପାନୀ ଖୋଲିଥିଲେ । କମିଶନରଙ୍କୁ ପ୍ରଭାବିତ କରି ଅନ୍ନକ୍ଲିଷ୍ଟ ବାସ୍ତୁହରାମାନଙ୍କ ପାଇଁ କର୍ମଯୋଗାଣର ବନ୍ଦୋବସ୍ତ କରିଥିଲେ । ତାଳଦଣ୍ଡା କେନାଲ ଖନନ ଓ ରେଭେନ୍ସା କଲେଜ ପ୍ରତିଷ୍ଠା ଆଦିର କଳ୍ପନା ଏହି କର୍ମଯୋଗାଣ ପରିକଳ୍ପନାରୁ ହିଁ ସୃଷ୍ଟି ହୋଇଥିଲା । ନ'ଅଙ୍କ ଦୁର୍ଭିକ୍ଷର ଅନ୍ନଛତ୍ର ଖାଇ ଯେଉଁମାନଙ୍କ ଜାତି ଚାଲିଯାଇଥିଲା

ଓ ଯେଉଁମାନେ ଅନ୍ୟଧର୍ମ ଗ୍ରହଣ କରିଥିଲେ ସେମାନଙ୍କୁ ସ୍ୱଜାତି ଓ ସ୍ୱଧର୍ମକୁ ଫେରାଇ ଆଣିବା ପାଇଁ ସେ ପୂଜା ଉପଚାର ମାଧ୍ୟମରେ ବହୁଅର୍ଥ ବ୍ୟୟ କରିଥିଲେ ଓ ଋଣଗ୍ରସ୍ତ ହୋଇପଡ଼ିଥିଲେ ।

## କଟକ ପ୍ରିଣ୍ଟିଂ କମ୍ପାନୀ ଓ ଭାଷା ଆନ୍ଦୋଳନ :

କର୍ମବୀର ଗୌରୀଶଙ୍କର ଓ କଟକ ପ୍ରିଣ୍ଟିଂ କମ୍ପାନୀ ସହ ତାଙ୍କର ସଂପୃକ୍ତିଥିଲା ଦୀର୍ଘ ଦିନ ଧରି । 'ଉତ୍କଳ ଦୀପିକା' ଏଠାରେ ଛପା ହୋଇ ବିଭିନ୍ନ ସ୍ଥାନକୁ ପଠାଯାଉଥିଲା । ବିଚିତ୍ରାନନ୍ଦ ଏହି କମ୍ପାନୀର ଆଦିକର୍ତ୍ତା ଥିଲେ ବୋଲି ଗୌରିଶଙ୍କର ଉଲ୍ଲେଖ କରିଛନ୍ତି । ଓଡ଼ିଆ ଭାଷାର ସୁରକ୍ଷା ପାଇଁ ସେ ପ୍ରଭୂତ ଯତ୍ନ କରିଥିଲେ । ଓଡ଼ିଶାରେ ବଙ୍ଗଳା ଭାଷାର ପ୍ରଭାବକୁ ପ୍ରତିହତ କରି ଯେଉଁମାନେ ଓଡ଼ିଆ ଭାଷାକୁ ସ୍ୱତନ୍ତ୍ର ଭାଷାର ମର୍ଯ୍ୟାଦା ଦେଇଥିଲେ ସେମାନଙ୍କ ଭିତରୁ ବିଚିତ୍ରାନନ୍ଦ ଅନ୍ୟତମ । ଓଡ଼ିଆ ଭାଷା ସହିତ ବଙ୍ଗଳାକୁ ଐଚ୍ଛିକ ଭାଷା ରୂପେ ସ୍କୁଲ କଲେଜ ପାଠ୍ୟରେ ଅନ୍ତର୍ଭୁକ୍ତ କରିବା ଯେ ଓଡ଼ିଆ ଭାଷା ପ୍ରତି ବିପଦ, ଏହି କଥାଟି ସେ କମିଶନର ରେଭେନ୍‌ସା ସାହେବଙ୍କୁ ଭଲରୂପେ ବୁଝାଇ ଦେଇଥିଲେ । ସେଥିପାଇଁ ଓଡ଼ିଆ ଭାଷା ସପକ୍ଷରେ କମିଶନର ସାହେବ ଦୃଢ଼ଯୁକ୍ତି ଉପସ୍ଥାପନା କରିଥିଲେ । ତାଙ୍କରି ଯତ୍ନରେ ବାବୁ ନନ୍ଦକିଶୋର ଦାସ ଦିପୋଟି

କିଛିଦିନ ପାଇଁ ସ୍କୁଲ ପରିଦର୍ଶକ ହେଲେ । ଫଳରେ ପାଠ୍ୟପୁସ୍ତକମାନ ଓଡ଼ିଆ ଭାଷାରେ ପ୍ରକାଶିତ ହେଲା । ସେ ନିଜେ ମଧ୍ୟ ଓଡ଼ିଆ ଭାଷାରେ ଏକ ପଞ୍ଜିକା, 'କରଣ କୁଣ୍ଡଳ' ଶୀର୍ଷକ ଏକ ପୁସ୍ତକ ଓ କୃଷି ବିଜ୍ଞାନ ଉପରେ ଆଉ ଖଣ୍ଡିଏ ପୁସ୍ତକ ରଚନା କରିଯାଇଛନ୍ତି ।

## କେରେଜ କମ୍ପାନୀ ଓ କୋବି ଚାରା ଆସୋସିଏସନ୍ :

କଟକ କେରେଜ କମ୍ପାନୀର ସେ ଥିଲେ ସ୍ରଷ୍ଟା । ଏହି କମ୍ପାନୀ ତରଫରୁ ଭଡା ଘୋଡ଼ାଗାଡ଼ି ଚଳାଇବା ଆରମ୍ଭ ହେଲା । କିନ୍ତୁ ସେତେବେଳେ ଜାତିବାଦ ଅତି ଉତ୍କଟ ଥିଲା । ଘୋଡାଗାଡ଼ିରେ ଅନ୍ୟ ନିମ୍ନ ବର୍ଗର ଲୋକଙ୍କ ସହ ବସି ଯିବା ପାଇଁ ଜାତ୍ୟାଭିମାନୀମାନେ ପସନ୍ଦ କଲେ ନାହିଁ । ଫଳରେ କେରେଜ କମ୍ପାନୀକୁ କ୍ଷତି ସହିବାକୁ ପଡ଼ିଲା । କୋବି ଚାଷର ପ୍ରଚଳନ ପାଇଁ ସେ ମଧ୍ୟ ଏକ କୋବି ଚାରା ଆସୋସିଏସନ୍ ଗଢ଼ିଥିଲେ । ୧୮୬୨ ମସିହାରେ ଦେବୋତ୍ତର ସଂପତ୍ତିର ରକ୍ଷଣା ବେକ୍ଷଣ ପାଇଁ ବିଚିତ୍ରାନନ୍ଦ ବାବୁ ମନବଳାଇଥିଲେ । ଏଥିନେଇ ସେ ଛୋଟଲାଟ 'ସିସିଲ୍ ବିଡନ୍'ଙ୍କୁ ଏକ ସ୍ମାରକ ପତ୍ର ମଧ୍ୟ ଦେଇଥିଲେ । ପୁରୀ ଜଗନ୍ନାଥ ବଲ୍ଲଭ ମଠକୁ ଏକ ନ୍ୟାସି ଅଧୀନରେ ରଖି ଏଥିରେ ସେ ଜଣେ ସଭ୍ୟ ରହିଥିଲେ । ପୁରୀ ମହାରାଜାଙ୍କର ସେ ଥିଲେ ଅନ୍ୟତମ ପରାମର୍ଶଦାତା ।

## ଶିକ୍ଷା ବିସ୍ତାର :

ବିଚିତ୍ରାନନ୍ଦଙ୍କର ଅନ୍ୟତମ ଉଜ୍ଜ୍ୱଳ କୀର୍ତ୍ତି ହେଉଛି ରେଭେନ୍‌ସା କଲେଜ । କଲେଜଟି କମିଶନର ରେଭେନ୍‌ସା ସାହେବଙ୍କ ନାମରେ ନାମିତ କିନ୍ତୁ କଲେଜ ପ୍ରତିଷ୍ଠା ପାଇଁ ବିଚିତ୍ରାନନ୍ଦ ବାବୁଙ୍କର ଅସୀମ ପ୍ରେରଣା ଥିଲା । କଲେଜ ପାଇଁ ସେ ଓଡ଼ିଶାର ବିତ୍ତବାନ ବ୍ୟକ୍ତି ଓ ରାଜା ଜମିଦାରଙ୍କଠାରୁ ବିପୁଳ ଅର୍ଥ ସଂଗ୍ରହ କରି କମିଶନରଙ୍କୁ ସାହାଯ୍ୟ କରିଥିଲେ । ଓଡ଼ିଶାରେ ଉଚ୍ଚଶିକ୍ଷା ପ୍ରସାର ପାଇଁ ତାଙ୍କ ଭିତରେ ଅନ୍ତଃପ୍ରେରଣା ରହିଥିଲା । ପ୍ୟାରୀମୋହନ ଆଚାର୍ଯ୍ୟଙ୍କୁ ବେସରକାରୀ ଉଦ୍ୟମରେ ଗୋଟିଏ ସ୍କୁଲ ସ୍ଥାପନ ପାଇଁ ପରାମର୍ଶ ଦେଇଥିଲେ । କଟକର ପ୍ୟାରୀମୋହନ ଏକାଡ଼େମୀ ସେହି ସାଧୁ ଉଦ୍ୟମର ଫଳଶ୍ରୁତି । ଶିକ୍ଷା ପ୍ରତି ତାଙ୍କର ଅନୁରାଗ ଓଡ଼ିଆ ଭାଷା ଆନ୍ଦୋଳନରେ ତାଙ୍କର ଭୂମିକା, ଓଡ଼ିଆରେ ପାଠ୍ୟ ପୁସ୍ତକ ପ୍ରକାଶନ ଲାଗି ତାଙ୍କର ଅଦମ୍ୟ ଉତ୍ସାହ ଦୃଷ୍ଟିରୁ ୧୮୬୯-୭୦ ରେ ଗଠିତ ଓଡ଼ିଶା ଡିଭିଜନର ଶିକ୍ଷା କମିଟି ସଭ୍ୟଭାବେ ସେ ନିଯୁକ୍ତ ହୋଇଥିଲେ ।

## ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରିକରଣ :

ଇଂରେଜ 'ଚା' ବ୍ୟବସାୟୀମାନଙ୍କ ଉଦ୍ୟମରେ ୧୮୭୪ ସାଲରେ ଆସାମ ଏକ ସ୍ୱତନ୍ତ୍ର ପ୍ରଦେଶର ମର୍ଯ୍ୟାଦା ଲାଭ କଲା । କିନ୍ତୁ ଓଡ଼ିଶାରେ ସଂଗଠିତ ଜନମତ ଅଭାବରୁ

ଓଡ଼ିଆଭାଷୀ ଅଂଚଳମାନ ମାନ୍ଦ୍ରାଜ, ମଧ୍ୟପ୍ରଦେଶ ଓ ବଙ୍ଗ ପ୍ରଦେଶରେ ରହିଥିଲା । ଓଡ଼ିଆ ଭାଷୀ ଅଂଚଳକୁ ଏକତ୍ରିତ କରିବା ଦାବୀ, ନେତୃତ୍ୱ ଅଭାବରୁ ଉତ୍ଥାପିତ ହୋଇ ପାରି ନଥିଲା । କିନ୍ତୁ ୧୮୪୧ ସାଲରେ ଭାରତ ସରକାରଙ୍କ ତରଫରୁ ଭାରତର ଯେଉଁ ମାନଚିତ୍ର ପ୍ରକାଶ ପାଇଥିଲା ସେଥିରେ ମଧ୍ୟପ୍ରଦେଶ ଓ ମାନ୍ଦ୍ରାଜରେ ଥିବା ଓଡ଼ିଆ ଭାଷୀ ଅଂଚଳମାନ ଓଡ଼ିଶା ସହ ଏକତ୍ର ସୂଚିତ ହୋଇଥିଲା । ଏହା ବିଚିତ୍ରାନନ୍ଦଙ୍କୁ ଅବିଦିତ ନଥିଲା । କିନ୍ତୁ କୌଣସି ଓଡ଼ିଆ ଏଥିପ୍ରତି ଧ୍ୟାନ ଦେଇନଥିଲେ । ଓଡ଼ିଶାର ଜନଜୀବନ ଗତିଶୀଳତା ହରାଇ ଯେପରି ନିଶ୍ଚେତନ ହୋଇ ପଡ଼ିରହିଥିଲା, ସ୍ପନ୍ଦନ ନାହିଁ, ଜାଗରଣ ନାହିଁ, ଅଭୀପ୍ସା ନାହିଁ, ସବୁକିଛି ଥିଲା ବିଳୟ କାଳର ବିକ୍ରିୟା । ଐତିହାସିକ ମହାଜାତିଟା ଦୀର୍ଘକାଳଧରି ଆତ୍ମବିସ୍ମୃତ ହୋଇପଡ଼ିରହିଛି । ବିଚିତ୍ରାନନ୍ଦଙ୍କ ଭିତରୁ କିଏ ଯେପରି ଆର୍ତ୍ତନାଦ କରି ଉଠିଲା—ଏ ଜାତି ଭିତରେ କ'ଣ ପ୍ରାଣଶକ୍ତିର ସଂଚାର ଘଟିବ ନାହିଁ ? ସେ କ'ଣ ଜୀବିକାକୁ ଆବୋରିଧରି କ୍ରୀତଦାସଟିଏ ଭଳି ସରାଜୀବନ ପଡ଼ି ରହିଥିବେ ? ଜାତିର ନବଜାଗରଣ ପାଇଁ ତାଙ୍କୁ ହିଁ ପ୍ରଥମେ ଶୁଭଶଂଖ ବଜାଇବାକୁ ହେବ । ଭାବାନ୍ତର ପରେ ସମ୍ଭ-ସମ୍ଭାବନାରେ ଆଶାଦୀପ୍ତ ହୋଇ ଓଡ଼ିଆ ଭାଷାଭାଷୀ ଅଂଚଳର ମିଶ୍ରଣ ପାଇଁ ଓଡ଼ିଶାରେ ତାଙ୍କର ସର୍ବପ୍ରଥମ କାର୍ଯ୍ୟ, ସେତେବେଳେ କଲିକତା କଲେଜର ଛାତ୍ର ମଧୁସୂଦନଙ୍କୁ କିପରି

ଅନୁପ୍ରେରିତ କରିଛି ତାହା 'ଶତାବ୍ଦୀର ସୂର୍ଯ୍ୟ'ର ନିମ୍ନ ଉଦ୍ଧୃତିରୁ ବେଶ୍ ହୃଦୟଙ୍ଗମ କରିହେବ । ସାହିତ୍ୟିକ ସୁରେନ୍ଦ୍ର ମହାନ୍ତି ଲେଖିଛନ୍ତି — "ସେ ଦିନ ଡାକରେ ଆସିଥିବା 'ଉତ୍କଳ ଦୀପିକା' ଖଣ୍ଡ ଫିଟାଇବା ମାତ୍ରେ ଗୋଟିଏ ସଂବାଦ ଉପରେ ମଧୁସୂଦନଙ୍କର ଦୃଷ୍ଟି ଅଟକି ରହିଗଲା । ସେହି ସମ୍ବାଦରେ ଯେପରି ମଧୁସୂଦନଙ୍କର ସବୁ ଉତ୍ପୀଡକ ଜିଜ୍ଞାସାର ଗୋଟିଏ ସମାଧାନ ରହିଥିଲା । ବଙ୍ଗଳାର ଲେଫ୍‌ଟନାଣ୍ଟ୍ ଗଭର୍ଣ୍ଣର ସାର୍ ରିଚାର୍ଡ ଟେମ୍ପଲ୍ ଓଡ଼ିଶା ଭ୍ରମଣରେ ଆସିଥିବା ବେଳେ ବାଲେଶ୍ୱର ଠାରେ ୧୮୭୫ ସାଲ ଫେବୃୟାରୀ ୨୭ ତାରିଖ ଦିନ ବାବୁ ବିଚିତ୍ରାନନ୍ଦ ଦାସ ଓ ରାଜା ଶ୍ୟାମାନନ୍ଦ ଦେ ତାଙ୍କୁ ଗୋଟିଏ ସ୍ମାରକ ପତ୍ର ଦେଇ ଓଡ଼ିଶାରେ ରେଳପଥର ପ୍ରସାର ଓ ସବୁ ସବ୍‌ଡିଭିଜନର ସଦର ମହାକୁମାରେ ଉଚ୍ଚବିଦ୍ୟାଳୟ ସ୍ଥାପନ ସାଙ୍ଗକୁ ପ୍ରସଙ୍ଗ କ୍ରମେ ଏକ ଶାସନାଧୀନରେ ଓଡ଼ିଆଭାଷୀ ଅଂଚଳର ଏକତ୍ରୀକରଣ ପାଇଁ ନିବେଦନ କରିଥିଲେ ।" ସ୍ୱତନ୍ତ୍ର ଓଡ଼ିଆ ପ୍ରଦେଶ ଗଠନ ପାଇଁ ଓଡ଼ିଶାର ଜନ ସମାଜରୁ ଏହାଥିଲା ସର୍ବ ପ୍ରଥମ ଦାବୀ । ଏଠାରେ ବିଚିତ୍ରାନନ୍ଦ ବାବୁ ନିଜ ପୁରୋଦୃଷ୍ଟିରେ ପରିଚୟ ଦେଇ ଭବିଷ୍ୟତରେ ମଧୁସୁଦନଙ୍କ ଭଳି ବହୁ ଜାତିପ୍ରାଣ ଓଡ଼ିଆଙ୍କ ପ୍ରାଣରେ ଗଭୀର ଆଲୋଡନ ସୃଷ୍ଟି କରିଥିଲେ ।"

## ମଧୁସୂଦନଙ୍କ ସହ ସାକ୍ଷାତ :

ମଧୁସୂଦନଙ୍କ ସହ ତାଙ୍କ ସଂପର୍କକୁ ଉଲ୍ଲେଖ ନ କଲେ ବାବୁ ବିଚିତ୍ରାନନ୍ଦଙ୍କ ଜୀବନର ଗୋଟିଏ ବିଶେଷ ଦିଗ ଅନାଲୋଚିତ ରହିଯିବ । ମଧୁସୂଦନ ଏନ୍‌ଟ୍ରାନ୍‌ସ ପାସ କଲାପରେ ତାଙ୍କ ବାପା ଚୌଧୁରୀ ରଘୁନାଥ ଦାସ ଅର୍ଥାଭାବ ଦୃଷ୍ଟିରୁ ଉଚ୍ଚ ଶିକ୍ଷା ଦେବା ପାଇଁ ମନବଳାଇଲେ ନାହିଁ । ମଧୁସୂଦନଙ୍କୁ ଖଣ୍ଡିଏ ଅମଲା ଚାକିରୀରେ ନିଯୁକ୍ତି ଦେବାପାଇଁ ଅନୁରୋଧ କରି ବିଚିତ୍ରାନନ୍ଦ ବାବୁଙ୍କ ପାଖକୁ ଚିଠି ଖଣ୍ଡେ ଲେଖିଥିଲେ । ଚିଠିଟି ଧରି ମଧୁସୂଦନ ବିଚିତ୍ରାନନ୍ଦଙ୍କ ଘରଠାରେ ପହଞ୍ଚିଲେ । ସେଠାରେ ପ୍ରବଳ ଜନସମାଗମ । ବାବୁ ବିଚ୍ରିତାନନ୍ଦ ମଧୁସୂଦନଙ୍କୁ ବୈଠକଖାନା ଭିତରକୁ ଡାକିନେଲେ । ଚିଠିଟି ପଢ଼ିଲେ । ସ୍ୱଗତୋକ୍ତି କଲା ପରି କହିଲେ, ‘‘ଓଡ଼ିଶାରେ କ’ଣ କେହି ଏଣ୍ଟ୍ରାନ୍‌ସ ଉପରକୁ ଯିବେନାହିଁ । ମୋହରୀର, ଅମଲା, ଛୁଟକାରିଆ ଓକିଲ, ଏଇଆ ଶେଷକୁ ହେବ ଓଡ଼ିଆଙ୍କ କପାଳ ଲିଖନ ? ମଧୁସୂଦନଙ୍କ ଆଡ଼କୁ ଅନାଇ କହିଲେ, ‘‘ଆହୁରି ପାଠ ଦରକାର, ଅନେକ ପାଠ । ଜାଣିଚୁ ମଧୁ, ମୁଁ ଯଦି ପାଠ ପଢ଼ିଥାନ୍ତି ବିଲାତ ଯାଇଁ ଟ୍ରେଭର ସାହେବଙ୍କ ଭଳି କମିଶନର ହୋଇଥାନ୍ତି । କିନ୍ତୁ ପଢ଼ିବା ବୟସରେ ପଢ଼ିଲି ନାହିଁ । ସେ ଭୁଲ ତୁ କରିବୁ ନାହିଁ, ମଧୁ ।’’ ଏଇ କେଇ ପଦ ଭିତରେ ଓଡ଼ିଆ ଜାତିର ଅଧୋଗତି ପାଇଁ ତାଙ୍କର ଗଭୀର ଅନ୍ତର୍ବେଦନା

ସ୍ପଷ୍ଟତର ହୁଏ । ମଧୁସୂଦନଙ୍କର ଜୀବନର ଗତିକୁ ବଦଳାଇ ଦେବାରେ ସେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ ।

ମଧୁସୂଦନଙ୍କ ଭିତରେ ଆଧାର ଥିଲା । ବାବୁ ବିଚିତ୍ରାନନ୍ଦଙ୍କ ସମ୍ବେଦନଶୀଳ ଓ ଉତ୍ସାହୋଦ୍ଦୀପକ ଉକ୍ତି ତାଙ୍କ ସୁପ୍ତ ଚେତନାକୁ ଜାଗରିତ କରିବାରେ ସହାୟତା କଲା ।

ଯେଉଁ ଅଳ୍ପକେତେଜଣ ଓଡ଼ିଆ ଜାତିର କଲ୍ୟାଣ ପାଇଁ ମଙ୍ଗଳ ଗାୟତ୍ରୀ ଗାନ କରିଛନ୍ତି, ତ୍ୟାଗ ଓ ଆତ୍ମଦାନ ବଳରେ ଏକ ବଳିଷ୍ଠ ସ୍ୱତନ୍ତ୍ର ଜାତି ରୂପେ ଗଢ଼ିବା ପାଇଁ ଉଦ୍ୟମ କରିଛନ୍ତି ସେମାନଙ୍କ ଭିତରୁ ବିଚିତ୍ରାନନ୍ଦ ଦାସ ଅଗ୍ରଗଣ୍ୟ ।

ତାଙ୍କର ସମାଜ ସଂସ୍କାର ପାଇଁ ନିରବଚ୍ଛିନ୍ନ ଉଦ୍ୟମ ତଥା ଲୋକ ସଂପର୍କ ଓ ବଦାନ୍ୟତା ହେତୁ ସେ ଶେଷ ଜୀବନରେ ଅର୍ଥାଭାବର ସମ୍ମୁଖୀନ ହୋଇ ୧୮୭୫ ସାଲ ଅଗଷ୍ଟ ୨ ତାରିଖ ଦିନ ବହୁମୁତ୍ର ରୋଗରେ ପିଡ଼ିତ ହୋଇ ମାତ୍ର ୪୮ ବର୍ଷ ବୟସରେ ଇହଲୀଳା ସମ୍ବରଣ କଲେ । ଆଜିର ଏହି ପବିତ୍ର ଉତ୍କଳ ଦିବସ ଅବସରରେ ଆସନ୍ତୁ ସେହି ମହାନ୍ ଆତ୍ମାଙ୍କର ସ୍ମୃତି ଚାରଣ କରି ନିଜକୁ ଗୌରବାନ୍ୱିତ କରିବା ।





# ଦେଶପ୍ରାଣ ବ୍ରଜସୁନ୍ଦର

ଯେଉଁମାନେ ମହତ୍ତର ଲକ୍ଷ୍ୟଓ ସମୂହ କଲ୍ୟାଣ ସାଧନ ପାଇଁ ଆତ୍ମୋତ୍ସର୍ଗ କରିଥାଆନ୍ତି ସେମାନେ ଦିବ୍ୟାଲୋକରୁ ମାଟିର ମଣିଷ ପାଇଁ ପ୍ରତ୍ୟେକ ଏକ ଏକ ସନାତନ ଓ ଶାଶ୍ୱତ ସନ୍ଦେଶ । ସେମାନଙ୍କ କର୍ମମୟ ଜୀବନ ମଣିଷ ସମାଜପାଇଁ ଏକ କାଳଜୟୀ ସଂପଦ । ଜୀବନ କାଳ ଭିତରେ ଆମେ ସେମାନଙ୍କୁ ଶ୍ରଦ୍ଧା କରୁ ମାନ୍ୟତା ଓ ଉଚ୍ଚାସନ ଦେଉ । ପୁଣି ସେମାନେ ସମାଲୋଚନାର ପାତ୍ର ହୋଇଯାନ୍ତି ବହୁ ମଣିଷଙ୍କ ପାଖରେ କିନ୍ତୁ ମୃତ୍ୟୁ-ପରେ ମଣିଷ ସେମାନଙ୍କୁ ବୁଝେ । ପୂଜା ଦିଏ । ସ୍ତୁତିଚାରଣ ରେ ମନବଳାଏ । ବିଶେଷ ଦିନମାନଙ୍କରେ ସାଂସ୍କୃତିକ ଉତ୍ସବାନୁଷ୍ଠାନରେ ସେମାନଙ୍କର ପ୍ରଶସ୍ତିଗାନକରେ,

ଆମେ ପ୍ରଗଳ୍ଭ ହେଉ । ବହୁ ମଣିଷଙ୍କ ସହିତ ସେମାନଙ୍କ ଜୀବନର ଦୃଷ୍ଟିଗତ ପାର୍ଥକ୍ୟ । ସେମାନେ ସତ୍ୟଦ୍ରଷ୍ଟା । ସତ୍ୟପାଇଁ ସେମାନଙ୍କ ଆତ୍ମଦାନ । ଏଣେ ସତ୍ୟ ହେଉଛି ମଣିଷର ଆତ୍ମାର ସମ୍ପଦ । ଯେତେବେଳେ ସମାଜରେ ମୂଲ୍ୟବୋଧର ଅବକ୍ଷୟ ଘଟେ, ବିଶ୍ୱାସ ଓ ବିଚାରର ସଂକଟ ଦେଖାଯାଏ, ସମସ୍ୟାର ଘେରରେ ମଣିଷ ଅତିଷ୍ଠ ହୁଏ, ଗତାନୁଗତିକତା ଓ ବ୍ୟକ୍ତି ସ୍ୱାର୍ଥ ମଣିଷକୁ ଯେତେବେଳେ ବିପଦର ବଳୟ ଭିତରକୁ ଠେଲିଦିଏ, ସମାଜ ସେତେବେଳେ ସାମାଜିକ ଓ ଜାତୀୟ ଜୀବନର ଦୃଷ୍ଟିଗତ ପରିବର୍ତ୍ତନ ପାଇଁ ସେମାନଙ୍କର ଜୀବନକୁ ଅନୁଶୀଳନ କରେ । ମଣିଷ ଆଗରେ ରାସ୍ତାଫିଟେ । ସେମାନଙ୍କ ଜୀବନ ଆମଭିତରେ ବଳ ଓ ସାହସ ଭରିଦିଏ ।, କର୍ମ ପ୍ରେରଣା ଆଣିଦିଏ । ଆଜି ସ୍ୱତନ୍ତ୍ର ଉତ୍କଳ ଦିବସର ଷଷ୍ଠିତମ ପୂର୍ତ୍ତିରେ ଯାଜପୁରର ଏହି ଦେଶପ୍ରାଣ ବ୍ରଜସୁନ୍ଦର ଦାସଙ୍କ ତ୍ୟାଗପୂତ ଆଦର୍ଶ ଜୀବନ ଆମର ଧ୍ୟେୟ ।

୧୮୮୦ ସାଲ ଜୁଲାଇ ତା ୨ ତାରିଖ ରେ ତାଙ୍କର ଜନ୍ମ ଏକ ସାମନ୍ତବାଦୀ ଜମିଦାର ପରିବାରରେ । ବାବୁ ବିଚିତ୍ରାନନ୍ଦଙ୍କ ପୂର୍ବ ପୁରୁଷଙ୍କ ସହ ତାଙ୍କର ପୂର୍ବ ପୁରୁଷମାନେ ବିହାରରୁ ଆସି କଣ୍ଟାବଣିଆରେ ବସବାସ କଲେ । କାଳକ୍ରମେ ତାଙ୍କ ପରିବାର ଉତ୍କଳର ଏକ ସଂଭ୍ରାନ୍ତ କରଣ ପରିବାର ରୂପେ ପରିଚିତ ହେଲା । ତାଙ୍କର ପିତା ଶ୍ୟାମସୁନ୍ଦର ଦାସ ଓ ମା ହେଉଛନ୍ତି ସ୍ୱର୍ଣ୍ଣପ୍ରଭା ଦେଈ । ଯାଜପୁରରୁ ପ୍ରାୟ ୧୫

କିଲୋମିଟର ଦୂର କଏଣା ଗ୍ରାମରେ ବ୍ରଜସୁନ୍ଦରଙ୍କ ପରିବାର ରହି ତାଙ୍କର ତିସାଣିଆ ଜମିଦାରୀ ବୁଝାସୁଝା କରୁଥିଲେ ।

କିନ୍ତୁ ତାଙ୍କର କର୍ମଭୂଇଁ କଟକ ସହର । କଟକ କଲେଜିଏଟ୍ ସ୍କୁଲ୍‌ରେ ଏନ୍‌ଟ୍ରାନ୍‌ସ ପାଠ ଶେଷ କରି ସେ କଲିକତାର ପ୍ରେସିଡେନ୍-ସି କଲେଜରେ ଏଫ୍.ଏ.ଓ ପରେ ସ୍ନାତକ ଶ୍ରେଣୀରେ ଭର୍ତ୍ତି ହେଲେ । କିଲିକତା ବିଶ୍ୱବିଦ୍ୟାଳୟରେ ସେତେବେଳେ ଓଡ଼ିଆ ଭାଷାର ସ୍ୱତନ୍ତ୍ର ମର୍ଯ୍ୟାଦା ନଥିଲା । ବଙ୍ଗାଳି ମାନଙ୍କର ଓଡ଼ିଆ ଭାଷାପ୍ରତି ବଡ଼ ତାଚ୍ଛଲ୍ୟଭାବ । ଛାତ୍ରବସ୍ଥାରେ ଗୋପବନ୍ଧୁ ଦାସ, ଲୋକନାଥ ପଟ୍ଟନାୟକଙ୍କ ସଙ୍ଗେ ମିଶି ବ୍ରଜସୁନ୍ଦର 'କର୍ତ୍ତବ୍ୟ ବୋଧିନୀ' ସଭା ଗଠନ କଲେ । ବଙ୍ଗଳାର ଛୋଟଲାଟଙ୍କୁ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ରକ୍ଷାପାଇଁ ଏହି ସଭା ଜରିଆରେ ଆବେଦନ କରାଗଲା । ପ୍ରବାସୀ ଓଡ଼ିଆଙ୍କ ଭିତରେ ଭାଷା ପ୍ରୀତି ସୃଷ୍ଟିଲାଗି ସେ ଉଦ୍ୟମ କରିଥିଲେ । 'କର୍ତ୍ତବ୍ୟ ବୋଧିନୀ' ସଭାର ଲକ୍ଷ୍ୟ ସଫଳ ହେଲା । ୧୯୦୨ ସାଲରେ ଓଡ଼ିଆ ଭାଷା କଲିକତା ବିଶ୍ୱବିଦ୍ୟାଳୟରେ ସ୍ୱୀକୃତି ପାଇଲା । ପରେ ପରେ ଗୋପବନ୍ଧୁ ଓ ଅନ୍ୟ ଯୁବବନ୍ଧୁମାନଙ୍କୁ ନେଇ ବ୍ରଜସୁନ୍ଦର ବାବୁ 'ତରୁଣ ଉତ୍କଳ ସଂଘ' ଗଠନ କରିଥିଲେ । ଯୁବ ସଂପ୍ରଦାୟ ଭିତରେ ଦେଶପ୍ରୀତି, ସାହିତ୍ୟାନୁରାଗ, ଶାରୀରିକ ଶିକ୍ଷା ପ୍ରତି ଆଗ୍ରହ ସଂଗେ ବିକାଶମୂଳକ କାର୍ଯ୍ୟକ୍ରମ ଗ୍ରହଣଥିଲା ଏହି ସଂଘର ଆଭିମୁଖ୍ୟ । ତେଣୁ ଓଡ଼ିଶାର ଜନଜୀବନ ସହ ସଂପୃକ୍ତି,

ଜାତୀୟ ଛାତ୍ର ଜୀବନର ଧ୍ୟେୟ । କଲିକତା ବିଶ୍ୱବିଦ୍ୟାଳୟ ପ୍ରେସିଡ଼େନ୍‌ସି କଲେଜରୁ ବ୍ରଜସୁନ୍ଦର କୃତିତ୍ୱର ସହ ସ୍ନାତକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ପରେ ସେ ହୋଇଗଲେ ଓଡ଼ିଶାର ତୃତୀୟ ଗ୍ରାଜୁଏଟ୍ । ଡେପୁଟି କଲେକ୍ଟର ପଦବୀ ତାଙ୍କୁ ଖୁବ୍ ସହଜରେ ମିଳିପାରିଥାନ୍ତା । କିନ୍ତୁ ବ୍ରଜସୁନ୍ଦରଙ୍କ ଜୀବନ ଭିନ୍ନ ଉପାଦାନରେ ଗଢ଼ା । ସେବା ଓ ସମର୍ପଣ ପାଇଁ ଛାତ୍ରଜୀବନରୁ ତାଙ୍କର ପ୍ରସ୍ତୁତି, ନୌକରୀ ପାଇଁ ନୁହେଁ । ସେ ଥିଲେ ସ୍ୱାଭିମାନର ପାହାଡ଼ । ସଂକଳ୍ପରେ ଅଟଳ । ଥରେ ମନରେ ଗୋଟିଏ କିଛି ସ୍ଥିର କରିନେଲେ ସବୁ ନିର୍ଣ୍ଣୟ ସେଇ ଆଡ଼କୁ ଚାଲିଯାଏ ।

ଓଡ଼ିଆ ଭାଷା ସାହିତ୍ୟକୁ ଦୁର୍ଦ୍ଦିନରୁ ଉଦ୍ଧାର କରି ଓଡ଼ିଆ ଭାଷାକୁ ଭାରତୀୟ ଭାଷା ଶ୍ରେଣୀରେ ସମୁଚିତ ସ୍ଥାନ ଦେବା ପାଇଁ ଥିଲା ତାଙ୍କର ଦୃଢ଼ ସଂକଳ୍ପ । ଓଡ଼ିଆ ଭାଷୀମାନଙ୍କୁ ଏକାଠି କରି ସେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ସ୍ୱପ୍ନ ଦେଖିଥିଲେ ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ ସହ । ପରେ ସେ ଉତ୍କଳ ସମ୍ମିଳନୀ ସହିତ ଜଡ଼ିତ ହୋଇ ପଡ଼ିଲେ ।

୧୯୦୫ ମସିହାରେ ତାଙ୍କ ବଳିଷ୍ଠ ସଂପାଦନାରେ 'ମୁକୁର' ସାହିତ୍ୟ ପତ୍ରିକା ଭାବେ ଆତ୍ମପ୍ରକାଶ କଲା । 'ଉତ୍କଳ ସାହିତ୍ୟ' ଠାରୁ ଏହାର ଲୋକପ୍ରିୟତା ଊଣା ନଥିଲା । ମୁକୁର ପ୍ରେସ୍ ଓ ମୁକୁର ପତ୍ରିକା ପ୍ରକାଶନର ପଛରେ ତାଙ୍କର ବ୍ୟବସାୟୀଙ୍କ ଦୃଷ୍ଟିଭଙ୍ଗି ନଥିଲା । ଉତ୍କଳ ସମ୍ମିଳନୀର ସମ୍ପାଦକ ହୋଇ ବାବୁ

ବ୍ରଜସୁନ୍ଦର ମୁକୁର ଛାପାଖାନାରେ ସମ୍ମିଳନୀର ପ୍ରଚାର ପତ୍ର, ଦାବୀପତ୍ର ପ୍ରକାଶ ଆଦିର ବ୍ୟବସ୍ଥା କରିଥିଲେ । ଜମିଦାର ଓ ମାନ୍ୟଗଣ୍ୟ ବ୍ୟକ୍ତିମାନଙ୍କୁ ଆତିଥ୍ୟ ପ୍ରଦାନ ରେ ବ୍ରଜସୁନ୍ଦର ବାବୁ ମୁକ୍ତ ହସ୍ତ ଥିଲେ । ୧୯୧୮ ସାଲରେ ମଧୁସୂଦନ ଦାସଙ୍କ ପ୍ରେରଣାରେ ମୁକୁର ପ୍ରେସରୁ ପ୍ରକାଶ ପାଇଲା ଇଂରାଜି ସାପ୍ତାହିକ ପତ୍ରିକା 'ଦି ନିଉ ଓଡ଼ିଆ' । ବ୍ରଜସୁନ୍ଦର ବାବୁଙ୍କର କବିତ୍ୱ ଥିଲା । ସାହିତ୍ୟ ସହ ତାଙ୍କର ସଂପର୍କ ବ୍ରତଗତ । ଓଡ଼ିଆ ସାହିତ୍ୟର ପ୍ରାଚୀନ ପନ୍ଥୀ ଓ ଆଧୁନିକ ପନ୍ଥୀ ଉଭୟଙ୍କ ଲେଖା ମୁକୁରରେ ପ୍ରକାଶ ପାଉଥିଲା । ମୁକୁର ପତ୍ରିକା ୧୩୩୦ ସାଲ (ଖ୍ରୀ ୧୯୨୩) ଭାଦ୍ରବ ସଂଖ୍ୟାରେ 'ସାମୟିକ ପ୍ରତିବିମ୍ବ' ସ୍ତମ୍ଭରେ ଦେଶମିଶ୍ରଣ ଆଲୋଚନାରୁ ବ୍ରଜସୁନ୍ଦରଙ୍କର ଲେଖାର ଉଦ୍ଧୃତିଟି ନିମ୍ନରେ ଦିଆଗଲା ।

''ଓଡ଼ିଆ ଜାତିର ଆଭ୍ୟନ୍ତରୀଣ ଅବସ୍ଥା ପ୍ରତି ଦୃଷ୍ଟି ନିକ୍ଷେପ କଲେ ଲଜ୍ୟାରେ ମସ୍ତକ ଅବନତ ହେଉଛି । ଦେଶମିଶ୍ରଣ ପାଇଁ ଆମ୍ଭେମାନେ ଆଖିକୁ ଦିଶିଲା ଭଳି କ'ଣ ବା କରୁଛୁ ? ଇଂରାଜି ଜାତି କୁଲା ଢାଉଁ ଢାଉଁକୁ ଡରି କାର୍ଯ୍ୟ କରିବାର ପାତ୍ର ନୁହଁନ୍ତି । ଦେଶମିଶ୍ରଣ ପ୍ରତି ଆମ୍ଭମାନଙ୍କର ଆନ୍ତରିକତା ନ ଦେଖିଲେ ସେମାନେ କିଛି କରିବେ ନାହିଁ । ମାନ୍ଦ୍ରାଜ ସରକାର ବରାବର ଓଡ଼ିଆ ମାନଙ୍କର ଆକାଂକ୍ଷା ବିରୁଦ୍ଧରେ କାର୍ଯ୍ୟ କରି ଆସୁଛନ୍ତି । ଓଡ଼ିଆ ଜାତି ଯଦି ସଭ୍ୟ ଜଗତରେ ମୁହଁ ଦେଖାଇବାକୁ ଚାହେଁ, ତେବେ ଆଜିଠାରୁ

ପ୍ରବଳ ଆନ୍ଦୋଳନ କରିବାକୁ ହେବ । ଗ୍ରାମେ ଗ୍ରାମେ ବୁଲି ଦେଶ ମିଶ୍ରଣ ବିଷୟରେ ଲୋକମତ ଗଠନ କରିବାକୁ ପଡ଼ିବ । ସମ୍ମିଳନୀକୁ ଗୋଟିଏ ଜୀବନ୍ତ କାର୍ଯ୍ୟକାରୀ ଅନୁଷ୍ଠାନରେ ପରିଣତ ନକଲେ ଆଉ ରକ୍ଷା ନାହିଁ । ସମ୍ମିଳନୀ ଅଧୀନରେ ପ୍ରତ୍ୟେକ ଜିଲ୍ଲା, ସବ୍‌ଡିଭିଜନ୍, ଥାନା, ଘରେ ଘରେ ମିଳନମନ୍ତ୍ର ପ୍ରଚାରିତ କରିବାକୁ ହେବ । ସମସ୍ତେ ଏହି କାର୍ଯ୍ୟଲାଗି ମନପ୍ରାଣ ଢ଼ାଳି କାର୍ଯ୍ୟ ନକଲେ ସରକାର ଓଡ଼ିଆ ଜାତିର ଆକାଂକ୍ଷା କଦାପି ପୂର୍ଣ୍ଣ କରିବେ ନାହିଁ ।'' ଏହାଥିଲା ବ୍ରଜସୁନ୍ଦର ଦାସଙ୍କର ଭବମାନସର ଉଚ୍ଛ୍ୱାସ । ଓଡ଼ିଆମାନଙ୍କୁ ଏକାତ୍ମହେବା ପାଇଁ ବ୍ୟାକୁଳ ନିବେଦନ । ତାଙ୍କ ଦେଶପ୍ରାଣତାର ସାକାର ପରିପ୍ରକାଶ । ଉତ୍କଳ ସମ୍ମିଳନୀରେ ଯେତେ କାର୍ଯ୍ୟହୋଇଛି ସବୁଥିରେ ବ୍ରଜସୁନ୍ଦର ଦାସ ପ୍ରଥମରୁହିଁ ଉତ୍କଳ ସମ୍ମିଳନୀର ସେ ସ୍ଥାୟୀ ସଭ୍ୟ । ଉତ୍କଳ ସମ୍ମିଳନୀ ପାଇଁ ଯେଉଁସବୁ ସ୍ମାରକପତ୍ର ଲେଖାଯାଇଛି, ସେ ସବୁ ତାଙ୍କରି ହସ୍ତାକ୍ଷର ।

୧୯୨୮ ମସିହା କଥା । ସାଇମନ କମିଶନ ଭାରତ ଶାସନ ସମୀକ୍ଷା ପାଇଁ ଦେଶରେ ପହଞ୍ଚିଥାଏ । ଜନ୍ ସାଇମନଙ୍କ ସହିତ ଅଟ୍‌ଲି ସାହେବ । ଜାତୀୟ କଂଗ୍ରେସ ସାଇମନ କମିଶନଙ୍କୁ ପ୍ରତ୍ୟାଖ୍ୟାନ କରିଥାଏ । ଦେଶର ଚାରିଆଡ଼େ କମିଶନ ବିରୋଧୀ ହୁହା । କିନ୍ତୁ ବାବୁ ବ୍ରଜସୁନ୍ଦର ଏଥିପ୍ରତି ଭ୍ରୂକ୍ଷେପ ନ କରି ଜନ ସାଇମନଙ୍କୁ ସ୍ୱାଗତ ପାଇଁ ପାଟନା ଗଲେ । ସ୍ମାରକ ପତ୍ର ପ୍ରସ୍ତୁତି ଆଦି ପାଇଁ ତାଙ୍କୁ ଦୀର୍ଘ ତିନିମାସ

ପାଟନାରେ ଅବସ୍ଥାନ କରିବାକୁ ପଡ଼ିଲା । ଯେଉଁଦିନ କମିଶନର ପାଟନା ରେଳ ଷ୍ଟେସନରେ ପହଞ୍ଚିଲେ ସେଦିନ ଚାରିଆଡ଼େ ପ୍ରାଚୀର ପତ୍ର 'ସ୍ୱାଗତମ୍ ସାଇମନ କମିଶନ' ପ୍ଲାଟଫର୍ମର କାନ୍ଥବାଡ଼ରେ ମରାଯାଇଥିଲା । କିନ୍ତୁ କମିଶନରଙ୍କ ଗାଡ଼ି ପହଞ୍ଚିଲା ମାତ୍ରେ ଡକ୍ଟର ରାଜେନ୍ଦ୍ର ପ୍ରସାଦଙ୍କ ନେତୃତ୍ୱରେ ଏକ ବିରାଟ ଜନତା 'କମିଶନ ଫେରିଯାଅ' ଧ୍ୱନି ସମଗ୍ର ବାତାବରଣକୁ ସରଗରମ କରିଦେଲା । ବ୍ରଜବାବୁ ରାୟ ବାହାଦୁର ଲକ୍ଷ୍ମୀଧର ମହାନ୍ତି ଓ କନିକା ରାଜା ସାହେବ ଶ୍ରୀ ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ତିନିହେଁ ସ୍ମାରକ ପତ୍ର ସହ ଜନ୍ ସାଇମନଙ୍କୁ ସ୍ୱାଗତ କଲେ । ଜନ ସମୁଦ୍ର ଭିତରେ ବ୍ରଜବାବୁଙ୍କ ନେତୃତ୍ୱରେ ଅଳ୍ପକେଇଜଣ ଓଡ଼ିଆ କମିଶନରଙ୍କୁ ସ୍ୱାଗତ କରୁଥିବା ଦେଖି ଜନ୍ ସାଇମନ୍ ବିସ୍ମୟ ପ୍ରକାଶ କଲେ । ସେମାନଙ୍କ ସାହସିକତା ଦେଖି ବ୍ରଜବାବୁଙ୍କ ସହ ବାର୍ତ୍ତାଳାପ କଲେ । ସ୍ୱତନ୍ତ୍ର ପ୍ରଦେଶ ଦାବୀ ଶୁଣିବା ପରେ କମିଶନର ସାହେବ ଜନସମୁଦ୍ର ଭିତରେ ସ୍ମାରକ ପତ୍ରଟି ଉପରେ ଦୃଷ୍ଟିପାତ କଲାପରେ ପଚାରିଲେ "Have you got a Script" ବ୍ରଜବାବୁ ଦମ୍ଭର ସହ ଉତ୍ତର ଦେଲେ ଓଡ଼ିଆ ଭାଷା ସାହିତ୍ୟ ଦେଶର ଅନ୍ୟତମ ପ୍ରାଚୀନ ଭାଷା ରୂପରେ ପରିଚିତ । ପରଦିନ ତାଙ୍କୁ ସାକ୍ଷାତ କରିବାକୁ ନିର୍ଦ୍ଦେଶ ଦେଇ କମିଶନର ବିଶ୍ରାମ କରିବାକୁ ଗଲେ । ବ୍ରଜବାବୁଙ୍କ ମନରେ ଆଶାସଂଚାର ଘଟିଲା । ତା ପରଦିନ ସକାଳୁ କନିକା ରାଜା ସାହେବ, ରାୟ ବାହାଦୂର

ଲକ୍ଷ୍ମୀଧର ବାବୁଙ୍କ ସହ ବ୍ରଜବାବୁ କମିଶନରଙ୍କ ସାକ୍ଷାତ ପାଇଁ ଗଲେ । ଜନ୍ ସାଇମନ ଏଥର ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶର ଆୟର ପନ୍ଥା ସମ୍ପର୍କରେ ଆଲୋଚନା କଲେ । ପ୍ରଦେଶ ଶାସନ ପାଇଁ ବିଭିନ୍ନ ଦିଗରୁ ଆୟ ଉପରେ ଆଲୋକପାତ କରି ସ୍ୱତନ୍ତ୍ର ପ୍ରଦେଶ ସ୍ୱାବଲମ୍ବନଶୀଳ ହୋଇ ପାରିବ ବୋଲି ବ୍ରଜସୁନ୍ଦର ଦୃଢ଼ ଯୁକ୍ତି ବାଢ଼ିଲେ । କମିଶନରଙ୍କ ହୃଦବୋଧ ହେଲା । ବ୍ରଜବାବୁଙ୍କ ନେତୃତ୍ୱ ସଫଳ ହେଲା । ଓଡ଼ିଆ ଭାଷୀମାନଙ୍କ ଦୁର୍ଦ୍ଦଶା ହୃଦୟଙ୍ଗମ କରି କମିଶନ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ସୁପାରିଶ କରିଗଲେ ତାଙ୍କର ଐତିହାସିକ ରିପୋର୍ଟରେ ।

୧୯୩୧ ମସିହା ଥିଲା ଦେଶ ପକ୍ଷରେ ଘଡ଼ିସନ୍ଧି ସମୟ । ଆଇନ ଅମାନ୍ୟ ଆନ୍ଦୋଳନ ପରେ ପରେ ଗୋଲଟେବୁଲ ବୈଠକ ପାଇଁ ପ୍ରସ୍ତାବ ଚାଲିଥାଏ । ଏତିକି ବେଳେ ଓଡ଼ନେଲ୍ ସାହେବଙ୍କ ଅଧ୍ୟକ୍ଷତାରେ ଓଡ଼ନେଲ କମିଟି ଓଡ଼ିଶା ଗ୍ରସ୍ତରେ ଆସିଲେ । ବ୍ରଜବାବୁ ସେତେବେଳେ ଉତ୍କଳ ସମ୍ମିଳନୀର ସଂପାଦକ । ଏଥର ସେ ଗୋଟିଏ ବିରାଟ ବର୍ଣ୍ଣାଢ଼୍ୟ ଶୋଭାଯାତ୍ରାର ଆୟୋଜନ କଲେ । ଉତ୍କଳର ଛିନ୍ନମସ୍ତା ଚିତ୍ରକୁ ହାତୀ ଉପରେ ଥୋଇ କଟକର ଗଣେଶ ଘାଟଠାରୁ ଛାତ୍ର ଓ ଜନସାଧାରଣଙ୍କର ଏକ ବିରାଟ ପଟୁଆର କମିଶନରଙ୍କ ଦୃଷ୍ଟି ଆକର୍ଷଣ ପାଇଁ ଚାଲିଥାଏ । ପୁରୋଭାଗରେ ଥାଆନ୍ତି ବ୍ରଜସୁନ୍ଦର ବାବୁ । ଓଡ଼ନେଲ ସାହେବଙ୍କୁ ଏହି ଦୃଶ୍ୟ ପ୍ରଭାବିତ କରିଥିଲା । ଓଡ଼ିଆ ଭାଷା ଭାଷୀ ଅଂଚଳ ଏକତ୍ରିକରଣ

ସପକ୍ଷରେ ମତାମତ ଦେଇଗଲେ । ବ୍ରଜବାବୁଙ୍କ ଦୃଢ଼ ନେତୃତ୍ୱ, ଅକୁଣ୍ଠିତ ଭାବେ ଅର୍ଥବ୍ୟୟ ପାଇଁ ଏ ସବୁ ସମ୍ଭବ ହୋଇଥିଲା । ଏପରି ବ୍ୟୟବହୁଳ ଘଟାଟୋପ ପାଇଁ ବ୍ରଜବାବୁ ଋଣଗ୍ରସ୍ତ ହୋଇ ପଡ଼ିଲେ । ଅନୁରୂପ ସାଧାରଣ କାର୍ଯ୍ୟାନୁଷ୍ଠାନ ପୂର୍ବରୁ ଚାନ୍ଦାସଂଗ୍ରହ ଉପରେ ସେ ବିଶେଷ ଗୁରୁତ୍ୱ ଆରୋପ କରୁନଥିଲେ । ତାଙ୍କର ଏଥିପାଇଁ ମନଥିଲା । ଧନ ମଧ୍ୟ ରହିଥିଲା । ଶେଷକୁ ତାଙ୍କର ଇଷ୍ଟେଟ୍‌ର ଆୟ ଅକୁଳାଣ ପଡ଼ିଗଲା । ଜାତୀୟ କଂଗ୍ରେସରେ ଯୋଗ ଦେବାପାଇଁ ତାଙ୍କୁ ବହୁବନ୍ଧୁ ପ୍ରବର୍ତ୍ତାଇଥିଲେ । କିନ୍ତୁ ନିଜ ନିଷ୍ପତ୍ତିରେ ସେ ଅଟଳ ଥିଲେ । ଜାତୀୟ କଲ୍ୟାଣ ଯେପରି କଂଗ୍ରେସ ଅନୁଷ୍ଠାନର ଲକ୍ଷ୍ୟ ବ୍ରଜବାବୁଙ୍କର ସମସ୍ତ କାର୍ଯ୍ୟକଳାପ ମଧ୍ୟ ଜାତିର ମଙ୍ଗଳ ପାଇଁ ଉଦ୍ଦିଷ୍ଟ । କିନ୍ତୁ ସର୍ବଭାରତୀୟ କଂଗ୍ରେସ ନେତୃବୃନ୍ଦଙ୍କର ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ବିରୁଦ୍ଧରେ ମନୋଭାବ ତାଙ୍କୁ ବିଶେଷ ଆଘାତ ଦେଇଥିଲା । ତାଙ୍କ ସ୍ୱାଭିମାନୀ ମନ ଏଥିପାଇଁ ବିଦ୍ରୋହ କରି ଉଠିଥିଲା । କିନ୍ତୁ ଆଜିକାଲି ପରି ରାଜନୀତିରେ ଜାତିଭେଦର ସେ ବିଶ୍ୱାସ କରୁନଥିଲେ । ଅସହଯୋଗ ଆନ୍ଦୋଳନ ସଫଳ ହେଲାନାହିଁ । ମହାତ୍ମାଗାନ୍ଧି ଜେଲରେ । ଜେଲରୁ ମୁକୁଳି ମହତାବ ବାବୁ ଓଡ଼ିଶାରେ କଂଗ୍ରେସ ସଂଗଠନରେ ଲାଗିଥାନ୍ତି, ବୀରକିଶୋର ଦାସ, ଗୋପବନ୍ଧୁ ଚୌଧୁରୀ, ନିର୍ମଳ ପଟ୍ଟନାୟକ ପ୍ରଭୃତି ତାଙ୍କୁ ସହଯୋଗ କରୁଥାଆନ୍ତି । ସାଧାରଣରେ କଂଗ୍ରେସ ନୀତି, ଆଦର୍ଶ,

କାର୍ଯ୍ୟକ୍ରମ ଓ ଦେଶର ଅବସ୍ଥା ପ୍ରଚାର ପାଇଁ 'ପ୍ରଜାତନ୍ତ୍ର'ର ପ୍ରକାଶନ ଆବଶ୍ୟକ ବୋଲି ଏକ ସିଦ୍ଧାନ୍ତ ନିଆଗଲା । କିନ୍ତୁ 'ପ୍ରଜାତନ୍ତ୍ର' ଛପା ହେବ କେଉଁଠି— ସେହି ହେଲା ବଡ଼ ପ୍ରଶ୍ନ । ବ୍ରଜସୁନ୍ଦର କଂଗ୍ରେସ ବିରୋଧୀ । ମହତାବ ବାବୁ ବ୍ରଜସୁନ୍ଦରଙ୍କୁ ଅନୁରୋଧ କଲେ । ମୁକୁର ପ୍ରେସରେ 'ପ୍ରଜାତନ୍ତ୍ର' ଛପା ହେଲା । ବିନା ଦ୍ୱିଧାରେ ବ୍ରଜବାବୁ ମହତାବଙ୍କର ଅନୁରୋଧ ରକ୍ଷା କଲେ । ସେତେବେଳେ ପ୍ରତ୍ୟେକଙ୍କର ଅନ୍ୟପ୍ରତି ସମ୍ମାନ ଥିଲା ।

ବ୍ରଜବାବୁ ତାଙ୍କର ବିଦ୍‌ବତ୍ତା ରାଜନୈତିକ କ୍ଷେତ୍ରରେ ଲୋକପ୍ରିୟତା, ସାମାଜିକ ପ୍ରତିଷ୍ଠା ଯୋଗୁ ବିହାର, ଓଡ଼ିଶା ଲେଜିସ୍‌ଲେଟିଭ୍ କାଉନ୍‌ସିଲରେ ୧୯୦୬-୨୦ ପର୍ଯ୍ୟନ୍ତ ସଭ୍ୟ ଥିଲେ । ବଡ଼ଲାଟ ସଭାରେ ମଧ୍ୟ ସେ ୧୯୨୧-୨୪ ପର୍ଯ୍ୟନ୍ତ ଓଡ଼ିଆ ମାନଙ୍କର ପ୍ରତିନିଧିତ୍ୱ କରିବାର ଗୌରବ ଅର୍ଜନ କରିଛନ୍ତି । ୧୯୩୭ ସାଲରୁ ମୃତ୍ୟୁ ପର୍ଯ୍ୟନ୍ତ ସେ ଓଡ଼ିଶା ବିଧାନସଭାରେ ସଭ୍ୟ ଥିଲେ । ସେ ନିଜକୁ ଜଣେ ଉଚ୍ଚକୋଟିର ବିଧାୟକ ଭାବେ ପ୍ରମାଣ କରିଦେଇଥିଲେ । ବିଧାନସଭାରେ ତାଙ୍କର ଶିଳ୍ପ ସଂପର୍କୀୟ ଆଲୋଚନା ଏବେ ମଧ୍ୟ ପ୍ରଣିଧାନ ଯୋଗ୍ୟ । ଏବେ ଓଡ଼ିଆ ଭାଷାକୁ କୋର୍ଟ କଚେରୀ ଭାଷା କରାଇବା ପାଇଁ ସରକାରୀ ସ୍ତରରେ ଉଦ୍ୟମ ହେଉଛି, କିନ୍ତୁ ସ୍ୱାଧୀନତା ପୂର୍ବରୁ ୧୯୪୩ ସାଲ ଅଗଷ୍ଟ ୧୫ରେ ଓଡ଼ିଆ ଭାଷାକୁ କୋର୍ଟ କଚେରୀରେ ଭାଷାରୂପେ ଗ୍ରହଣ କରିବା ଲାଗି ବ୍ରଜସୁନ୍ଦର ଦାସ ପ୍ରଥମେ ବିଲ୍ ଆଣିଥିଲେ ।

ଏସବୁ ବ୍ୟତୀତ ମେଦିନ୍‌ପୁରରେ ଭାଷା ଆନ୍ଦୋଳନ ସହ ଏହି ଅଂଚଳକୁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶରେ ସାମିଲ କରିବା ପାଇଁ ସେ ଉଦ୍ୟମ କରିଥିଲେ । "ଓଡ଼ିଆ ସ୍ୱାର୍ଥରକ୍ଷା କମିଟି" "ଓଡ଼ିଶା କ୍ରୀଡ଼ା ପରିଷଦ" ଗଠନ କରି ସେ ନିଜେ ସେ ସବୁର ସଭାପତି ରହିଥିଲେ । ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ଆନ୍ଦୋଳନକୁ ବେଗବାନ୍ କରିବା ପାଇଁ ତାଙ୍କର ପ୍ରାଣଢ଼ଳା ଉଦ୍ୟମ ରହିଥିଲା ।

ବ୍ରଜବାବୁ ଥିଲେ ଜଣେ ସୁବକ୍ତା, ସୁ ସାହିତ୍ୟିକ ଓ ସୁସଂପାଦକ୍, ସେ ଜଣେ ସୁଲେଖକ ମଧ୍ୟ ଥିଲେ । ମୁକୁରର "ସାମୟିକ ପ୍ରତିବିମ୍ବ" ଶୀର୍ଷକ ସମସ୍ତ ଲେଖା ତାଙ୍କ ସୃଷ୍ଟିଶୀଳ ମନର ପ୍ରତିରୂପ ମାତ୍ର । ଛୋଟ ଛୋଟ ପିଲାମାନଙ୍କୁ ଖେଳ କୌତୁକ ମାଧ୍ୟମରେ ଓଡ଼ିଆ ଅକ୍ଷର ସହିତ ପରିଚିତ କରେଇବା ଲକ୍ଷ୍ୟରେ ସେ ପଦ୍ୟରେ "ଅକ୍ଷର ପରିଚୟ" ପୁସ୍ତକ ରଚନା କରିଥିଲେ । ତାଙ୍କର ବହୁ କବିତା, ପ୍ରବନ୍ଧ ଏଯାବତ୍ ଲୋକ ଲୋଚନକୁ ଆସିପାରି ନାହିଁ । ଏମିତି ଏକ ବିଲକ୍ଷଣ ପ୍ରତିଭା ସଂପନ୍ନ ଘଟଣା ବହୁଳ ଜୀବନର ଅବସାନ ଘଟିଲା ତା ୯।୬।୧୯୪୪ ରିଖରେ । ସମଗ୍ର ଓଡ଼ିଶା ତଥା ଯାଜପୁରବାସୀଙ୍କ ପାଇଁ ସେ ଥିଲେ ଗର୍ବ ଓ ଗୌରବ । ଆଜିର ଏ ପବିତ୍ର ଉତ୍କଳ ଦିବସରେ ସମଗ୍ର ଯାଜପୁର ଅଧିବାସୀମାନଙ୍କର ସେହି ମହାନୁଭବଙ୍କ ପ୍ରତି ବିନମ୍ର ଶ୍ରଦ୍ଧାଞ୍ଜଳୀ ।

**ସମାପ୍ତ**

